# ବିକ୍ଷିପ୍ତିକା

ଶ୍ୟାମସୁନ୍ଦର ପାଣିଗ୍ରାହୀ

ପ୍ରକାଶକ
ବା[illegible]
ପଲସରା (ଗଞ୍ଜାମ)

Date
R[illegible]

ମୂଲ୍ୟ ଟ ୦-୬୦

Digitized by srujanika@gmail.com

# ଭୂମିକା

ପୁରସ୍କାର ଆଶା ରଖି ଲେଖିନ ଏ ଗୀତ
ଅବସର-ବିନୋଦନ-ଲେଖମା ନିଃସୃତ ।
ତେବେ ସୁଧୀ ଥାନେ ସୁଧ ହେଲେ ଶରଣତ
ନତ ଶିରେ ନେବ ଭକ୍ତ ଆଶୀର୍ବାଦବତ ।



Digitized by srujanika@gmail.com

କବିସମ୍ରାଟ ୰ ଚିନ୍ତାମଣି ମହାନ୍ତି,
ମହୋଦୟଙ୍କ
ପବିତ୍ର ସ୍ମୃତି ଉପଲକ୍ଷେ

# ଭକ୍ତ୍ୟୁପହାର

ପ୍ରତିଭା-ପୂଜନ ମୂଲ୍ୟ ବୁଝିନ ଉତ୍କଳ;
ସ୍ଥାନ ଆଜି ତେଣୁ ତା'ର ବିଶ୍ୱେ ରସାତଳ—
ହୋଇଛି । ମୁଁ ତହିଁ ଜଣେକ ଦମ୍ଭରେ ପୁଣି,
ପୂଜନ ମାନସେ ଯିବି ହେ ! ସୁଧୀ-ଅଗ୍ରଣୀ,
କାହିଁ ସେହି ଉପଚାର ? କାହିଁ ସେହି ଫୁଲ ?
ଦୀନ ଉପହାରେ ସତେ ବାନ୍ଧିବି ତା' ମୂଲ ?
ବିକ୍ଷିପ୍ତ-ମାନସେ ଅଛୁ 'ବିକ୍ଷିପ୍ତିକା' ଧରି,
କିପରି ଅର୍ପିବି ହାୟ ! ଶଙ୍କା ଆସେ ତଡ଼ି,
ଉଦ୍‌ବେଗ ବଢାଇ ବୁକେ, ହେ କବିସମ୍ରାଟ !
ଆଶୀର୍ବାଦ କର ଫେଡ଼ି ହୃଦୟ କବାଟ ।

ପଲସରା
୧୫-୧୨-୬୫

ଭବଦୀୟ କୃପାଭିକ୍ଷୁ,
ଶ୍ୟାମସୁନ୍ଦର ପାଣିଗ୍ରାହୀ,

Digitized by srujanika@gmail.com

# ବକ୍ଷିପ୍ତିକା

ଦେଖି କେନ୍ତ୍ର ପିନ୍ଧବାର ଖଦଡ,
ବୁଝନାହିଁ ତା'ର ହୃଦୟ ବଡ ।
କେତେ ଚୋର, ଖଣ୍ଡ, ସାଧବ ପୁଣି
ଖଦଡ ମହିମା ହୁଅନ୍ତି ଗୁଣି ।

*　　　*　　　*

ଆମେ ଯା'କୁ କହୁ ଭାଗ୍ୟ-ବିଧାତା,
ସେହି ହୋଇପାରେ ବିନାଶକର୍ତ୍ତା;
କେତେ ଏହିପରି ଧୋବଳ ଠକ,
ଧର୍ମ୍ମ ଥା'ନ୍ତି, ଯଥା, ବୈଷ୍ଣବ ବକ ।

*　　　*　　　*

ପରପାଇଁ ନିଜ ଜୀବନ ବୋଳି
କହୁଛ ଯେ ଦାଣ୍ଡ ବଜାରେ ବୁଲି;
ରଖିବ ତାହାଠି ନିରତ ଲୟ,
ଉଠିପାରେ ଯିଏ ଶୂନ୍ୟେ ପ୍ରଳୟ ।

*　　　*　　　*

ଦେଶ ସେବା ଯା'ର ଜୀବନ ଲକ୍ଷ୍ୟ
ଦେଶ ପାଇଁ ଯିଏ ପାତୁଛି ବକ୍ଷ,
ଆସନ ପାଇଁ ତା' ନ କାନ୍ଦେ ପ୍ରାଣ,
ଦେଶୋନ୍ନତି ମାତ୍ର କେବଳ ଧ୍ୟାନ ।

*　　　*　　　*

Digitized by srujanika@gmail.com

ଫଳନ୍ତି ଗଛର ଡାଳକୁ ତାଳ,
ଜଳ ଯୋଗେ ଯଥା କଦମ୍ବମାଳ,
ଜ୍ଞାନବାନ ତଥା କରଇ ଜ୍ଞାନ
ଦେଶଲାଗି ଗଡ଼ା ତାହାର ପ୍ରାଣ ।

* * *

ଅକସ୍ମାତ ଦେଶ ବିପଦ ଶୁଣି,
ତାଳନ୍ତ ଲୋଚକ କେତେକ ପୁଣି;
ପର ମୁହୂର୍ତ୍ତରେ ସକଳ ଭୁଲି
ନିଜ ସ୍ୱାର୍ଥ ପୂର୍ତ୍ତି କରନ୍ତି ଭୁଲି ।

* * *

'ବରକୋଳି' ବୋଲି ଯାହାକୁ କହି
ଭିତରଟା ତା'ର ଦେଖନା ଫେଇ;
ଜଗତ ଯାହାକୁ କହଇ ଭଲ,
ତହିଁ ମଧ୍ୟେ ସଦା ପୂରିତ ସଲ ।

* * *

'ରଙ୍ଗ' ବୋଲି ଯା'କୁ ଜଗତ କହେ
ପ୍ରକୃତରେ କି ତା' 'ବରଣ ତା' ହେ ?
'ନାରଙ୍ଗ' ବୋଲିଣ କହେ ଯାହାରେ
ରଙ୍ଗ ସେ ନୁହଇ କି ପ୍ରକୃତରେ ?

* * *

Digitized by srujanika@gmail.com

ନ୍ୟାୟପଥ ହୋଇ ହେଲେ ଲଙ୍ଗୁଆ
ଶୁଣେ ଯାହା କଥା କହେ ଖଚୁଆ,
ଚତୁର-ବଖାନ ବକାର-ପୂର୍ଣ୍ଣ
ହୋଇ କରେ ଆତ୍ମ ସମ୍ମାନ ଚୂର୍ଣ୍ଣ ।

* * *

ପାଠ ପଢ଼ିଦେଲେ ବଢ଼େନା ଜ୍ଞାନ,
ନାଚ କରି ଦେଲେ ଛୁଟେନା ମାନ,
ହାଟରେ ବୁଲିଲେ ଯାଏନା ଜାତି,
ପ୍ରାତଃରୁ ଉଠିଲେ ଜନ୍ମେନା ଭକ୍ତି ।

* * *

ଲୁଣୁଆ ହାଟେ ଯେ ମରାଏ ସାପ,
ଶୁଖିଲା ନଦୀରେ ବାନ୍ଧଇ ଘୂପ,
ଜଗତକୁ ବସେ ତୋଷିବ ବୋଲି,
ନ ଯାଅ ତାହାର କଥାକୁ ଭୁଲି ।

* * *

ଧର୍ମ ହେଉ ଅବା ପଣ୍ଡିତ ହେଉ
ପର ଦୁଃଖେ ନୁହେ କାତର ଯେହୁ,
ଜଗତେ ଯେତେ ସେ ହେଲେହେଁ ମାମ,
ଛାଡ଼ ତାଙ୍କୁ ପଶୁ ସମାଜେ ଗଣି ।

* * *

Digitized by srujanika@gmail.com

ତୁଚ୍ଛରେ ଗର୍ଜଇ ସତର କୋଟି,
ସଭରେ ଯାହାର ନ ଫିଟେ ପାଟି,
ସମ୍ମାନ ସକାଶେ ସବୁଠି ବାଇ,
ବୁଝିନେବ ତା'ଠି ବିଷୟ ନାହିଁ ।

*   *   *

ହାତେ ମାପି ଯଦ୍ଧ ଭୂଖଣ୍ଡେ ଭୂଲ,
ଦଣିବ ତୁମକୁ ସମ୍ମୁଖ ଖାଲ ।
କାଦୁଅକୁ ଯାଇ ଧୋଇବା ଠାରୁ
ଭଲ ସତରକ ହେବା ଆଗରୁ ।

*   *   *

ଅଚ୍ଛି ତୁମଠାରେ ଯଦ୍ଧ ଶକତି
ବଢ଼ିବ ଲୋକଙ୍କ ନଜ୍ରେ ଭକତି ।
ଫୁଲ ଯାଏ ନାହିଁ ବାସ ବତରି,
ଲୋକେ ନା' ଆସନ୍ତି ଆଦର କରି ।

*   *   *

ଖଟା କି ମିଠା ତା' ଚୂଖିଲେ ସିନା
ରସାଳର ଗୁଣ ପଡଇ ଜଣା;
ବାହାରକୁ ଦେଖି ନ ବାନ୍ଧ ମୂଲ,
ନିଷ୍ଟୟ ତହିଁରେ ରହିବ ଭୁଲ ।

*   *   *

Digitized by srujanika@gmail.com

ପର କଥାରେ ଯେ ହୁଅଇ ବାଇ,
ପର ସୁଖେ ମାରେ ଜଳରେ ଡାଇ,
ପର ଦୁର୍ଦ୍ଦିନରେ ଲଭଇ ଶାନ୍ତି
ଚହ୍ଲିଲ୍ ତାହାର ନ ମାଉ କନ୍ତ ।

*　　　　*

ଆଜର ମିତର କାଲ ଶତ୍ରୁରୁ,
ଏଥିପାଇଁ ତିଳେ ନହୁଅ ଖାନ୍ତୁ;
ଏହାଠାରୁ ବଡ଼ ଦେଖିବ କେତେ
ବଞ୍ଚିବାକୁ ପନ୍ଥ ହୁଏ ଜଗତେ ।

*　　　　*　　　　*

ବିପଦ କରଇ ସରଣୀ ସଫା,
ଅଶ୍ରୁ କରେ ହୃଦ-ଜଞ୍ଜାଳ ରଫା;
ଆଷାଢ଼ର ଘୋର ବରଷା ପରେ,
ବିମଳ-ଶରତ-ଜ୍ୟୋତ୍ସ୍ନା ଝରେ ।

*　　　　*　　　　*

ପଥରରୁ ବଳ ହୃଦୟୁ ଆଣ୍ଣ-
କଲେ, ମିଳେ ଭବସାଗରେ ଘାଟ;
ଧୈର୍ଯ୍ୟ ଏହାର ମୂଳ ଷେପଣି
ଯେପଣେ ବାନ୍ଧ ତେଣେ ଯିବ ସେ ଟାଣି ।

*　　　　*　　　　*

Digitized by srujanika@gmail.com

ବୈରୀକୁ ଯଦ୍ୟପି ଆଣିବ ପଥେ,
ବାଧା ନ ଦିଅ ତା' ଅନ୍ତରଗତେ;
ସତଭାବ ରଖ ତାହାର ତୁଲେ,
ଅନାଥ ତରଣୀ ଫେରିବ କୂଳେ ।

*　　　*　　　*

ନାସ୍ତିକକୁ ଯଦି ଡାକିବ ଭାଇ
ତୁମର ଯଶ ସେ ବୁଲିବ ଗାଇ;
ଖଣ୍ଡିବ ତା'ର କେତେହିଁ ଭୁଲ,
ଜଣେ ହେବ ସିଏ ତୁମର ତୁଲ୍ୟ ।

*　　　*　　　*

ଆସେ ଯଦି କେହି ତୁମର କତି
ବୁଦ୍ଧିନାଶ ହେଲେ ତାହାର ମତି;
ନବୁଲନ୍ତୁ ସର୍ବେ ଯାଚନା କରି
ସେଥିପାଇଁ ଆଗୁଁ ନମର ଡର ।

*　　　*　　　*

ବଢେଇ ସଲକ୍ଷେ ଖାଙ୍କଡା କାଠ,
ମୂର୍ଖକୁ ଗୁରୁ ଦିଅଇ ପାଠ;
ଅସାଧୁକୁ, ସାଧୁ କରଇ ଭଲ,
ନିର୍ମଳୀ ଯୋଗରେ ଜଳ ନିର୍ମଳ ।

*　　　*　　　*

Digitized by srujanika@gmail.com

ଦେହେ ଯାହା ଥାଏ ଗୁଣ ଅଗୁଣ,
ସଙ୍ଗ ଦୋଷେ ତାହା ବଢ଼ଇ ପୁଣ;
ଏକଇ ପବନ ଆଗର ବନ୍ଧୁ,
ସଙ୍ଗ ଗୁଣୁ 'ଗନ୍ଧ' 'ଦୁର୍ଗନ୍ଧ' ଦୁଇ ।

*　　　*　　　*

କୁକୁର ଯଦ୍ୟପି ଦିଏ କାମୋଡ଼
ତୁମେ ନ କାମୁଡ଼ ତାହାରେ ଚଢ଼;
କରନାହିଁ ଏଥି ପାଇଁରେ ଖେଦ,
ପଶୁ ତୁମ ମଧ୍ୟେ ଏତିକ ଭେଦ ।

*　　　　　*

ମୁହଁ ମୋଡ଼ କେହି କହିଲେ କଥା
ତୁମେ ହସି ହୁଅ ଉତ୍ତର ଦାତା,
ତୁଟିଯିବ ତହିଁ ସକଳ ଭ୍ରାନ୍ତି
ଜଳ ଯୋଗରେ ଅନଳ ଶାନ୍ତି ।

*　　　*　　　*

ଅଳପ ଲୋକକୁ ବହୁତ ଧାର
ଦେଲେ ବୁଝଇ କି ସେ ମହତ ତା'ର ?
ପୃଷ୍ଠେ ସ୍ଥାନେ ଦେଖେ ଶୂନ୍ୟର ନାଟ
ଗଧ ଯଥା ବହେ ଚନ୍ଦନ କାଠ ।

*　　　*　　　*

Digitized by srujanika@gmail.com

ହୃଦୟ ଯାହାର ନୁହେ ନିର୍ମଳ
ସବୁ କଥା ତାକୁ ଲାଗଇ ଖଲ;
ମୁକୁଟକୁ ଆଣି ପାଦରେ ଦଳେ
ଜୋତା ନେଇ ପିନ୍ଧେ ଶିର ଉପରେ ।

* * *

ତୁମେ ଯଦି ହସି କହିଲେ କଥା
ଲାଗେ ମିଠା କେଉଁ ବ୍ୟକ୍ତିକ ତା',
କହିବାଠୁଁ ତହିଁ ହୋଇବା ତୁନି
ଗୁଣିର ପ୍ରଧାନ କର୍ତ୍ତବ୍ୟ ପୁଣି ।

* * *

ଗୁଣର ସରବେ କର ଆଦର,
ସୁନ୍ଦରପଣକୁ ଚୁଲିରେ ମାଡ;
ରୂପପାଇଁ ନୁହେଁ, ଗୁଣର ବନ୍ଧୁ
କୋକିଳକୁ ଆମେ ଏତେ ଆଦରୁ ।

* * *

ଶତ୍ରୁ କରେ ନାଶ କାହାର ବେଶ
ରୋଗ କରେ ଶେଷ ଅନ୍ତର ଦେଶ,
ନୈତେଜ ଗଜଭୁକ୍ତ କଇଠ ଦେଖ
ଅନ୍ତେ ରସହୀନ ସୁନ୍ଦର ମୁଖ ।

* * *

Digitized by srujanika@gmail.com

ଜନମ ମରଣ ଆଗତ କଥା
ଜାଣିବାକୁ ଚେଷ୍ଟା କରନା ବୃଥା;
ବ୍ୟର୍ଥରେ ଯିବ ଜୀବନ ବୃତ୍ତ,
ଦେବତା, ମନୁଷ୍ୟ ପ୍ରଭେଦ ଏଥି ।

*　　*　　*

ମରଣକୁ ଯିଏ ନିରତ ଡରେ
ପ୍ରତି ପଲକରେ ସେ ଯିନା ମରେ;
ପ୍ରକୃତ ବୀର ଯେ ମରଣ ବରେ,
ଜନମ ପୁଣି ତା' ମରଣ ଥରେ ।

*　　*　　*

ଭୁକିଲେ କୁକୁର ନଯାଅ ଥରି,
ଦେଖ କି କରେ ସେ, ଧଇର୍ଯ୍ୟ ଧରି;
ସାଗର-ଉତ୍ତାଳ-ତରଙ୍ଗାବଳି
ପାରଇ କି କେବେ କୂଳକୁ ଗିଳି ?

*　　*　　*

ନିଜ ଦୋଷ ସବୁ ଗୋପନେ ରଖି
ପର ଭୁଲ ପାଇଁ ନ ଦିଅ ଆଖି;
ବସନେ ଢାଙ୍କିଲେ ଅନଳ ଝୁଲି,
ଶେଷକୁ ତାହାର ରହେ କି ମୂଲ ?

*　　*　　*

Digitized by srujanika@gmail.com

ନଜର ଦୋଷକୁ ଆଗରେ ଥୋଇ
ନ୍ୟାୟପଥ ହେଲା କଏ ଯେ କାହିଁ ?
ତେଣୁ ନା ଏପରି ଫଳଇ ଫଳ
ରସାଳ ଗଛରେ ଘାଟଇ ବେଲ ।

* * *

ସୁଚବନ୍ତ ହୋଇ ଗାଇଲେ ଗୀତା,
ନସୁମିତ ଭାବେ ଖାଇଲେ ପିଠା,
ତର୍କରେ ମିଳନ୍ତି ନାହିଁତ 'ପ୍ରଭୁ',
ପଣ୍ଡୁଏ ଯେତେ ସାଧନା ସବୁ ।

* * *

ଉପରେ ପଡ଼ ଯେ ଆଗୁଆ କହେ,
ସବୁ ଜଣା ପରି ସୂଚନା ଦିଏ,
ନପିବ ତାହାକୁ କେବେହେଁ ବିଶ୍ୱାସ
ଥିବାଯାଏ ତୁମ ଦେହେ ନିଶ୍ୱାସ ।

* * *

ନାରୀଙ୍କୁ ଦେଖିଲେ ହୁଅ ପ୍ରଣତ,
ଯାଅନାହିଁ ଧରିବାକୁ ପଣତ;
ନାରୀ ଯୋଗୁଁ ସ୍ୱର୍ଣ୍ଣ ଲଙ୍କା ବିନାଶ,
ସୁବିଶାଳ-କୁରୁ-ବଂଶ ପାଉଁଶ ।

* * *

Digitized by srujanika@gmail.com

ଶଠ ପୁରୁଷର ନଥାଏ ଜ୍ଞାନ
ମାନ ଅପମାନ ସବୁ ସମାନ;
ପର ମନ ତୋଷି କହଇ କଥା,
ସ୍ୱାର୍ଥ ଜଗି ହରେ ଅପର ବ୍ୟଥା ।

*　　　*　　　*

କାନ୍ଦାଇବା ଠାରୁ ସହସ୍ର ଲୋକ,
ଜଣେ ହସାଇବା ନୁହେ କଠେକ ?
ହସା କନ୍ଦା ଯାର ଜୀବନ ପେଶା,
ତାହାଠାରେ କେବେହେଁ ନ ପୋଷ ଆଶା ।

*　　　*　　　*

ସବୁଠି ନଥାଏ ଗୁଣ ଆଦର,
ଗୁଣିଏ ସବୁଠି ନୁହନ୍ତି ବଡ଼,
ବେଦ ଶ୍ରୁତ ବୋଧ ଚରଣୁ ପାଇଁ
ଥାଆନ୍ତି କେତେକ ନରଚ ରୁହିଁ ।

*　　　*　　　*

ଅଧରେ ଯାହାର ମଧୁର ହସ,
ଅନ୍ତରେ ପୂରିତ ଗରଳ ବିଷ,
ବେଳ ମିଷ୍ଟ କଥା କହଇ ପୁଣି,
ସେମାନଙ୍କୁ କେବେହେଁ ନ ଭାବ ଗୁଣୀ ।

*　　　*　　　*

Digitized by srujanika@gmail.com

ବଡ଼ାଏ ନଡ଼ା ଯା' ଗୂଳରେ ନାହିଁ
ହାତ ପତାଏ ଯେ କଡ଼ାକ ପାଇଁ,
ନ ଥାଉ ପଛକେ ପଢ଼ି ସେ ପାଠ
ଚେତେକ ନେହେ ସେ ବିବେକବନ୍ତ ।

* * *

'ମୁଁ କାର୍' ପ୍ରତ୍ୟେକ କଥାରେ ଘୋଷେ,
ଗୁରୁ, ଲଘୁ ଭେଦ ଭୁଲଇ ରୋଷେ,
ହେଲେ ପୁଞ୍ଜି ପତ ବାଣୀ-ସେବକ,
କିଏ କହିବ ତା' ଅଛି ବିବେକ ?

* * *

କୋଟ୍ ଉପରେ କୁରୁତା ପିନ୍ଧ,
ମୁକୁଟ ରୂପରେ ଜୋତାକୁ ଛଡ଼,
ଦେଖାଏ ଯଦି କେ ଆଦର୍ଶ ବୋଲି,
ତାହିଁରେ କେବେହେଁ ନଯାଅ ଭୁଲି !

* * *

ସାଧିଲେ ହେଁ କେତେ ଜଗତ ହିତ
ମୌସୁମୀ; କିଏ ସେ ବୁଝେ ନାହିଁତ
ନୀରବ ସାଧକ ତଥା ଏ ଭବେ
ଶ୍ରେଷ୍ଠାକୁ ଦିଅନ୍ତୁ ଗୁରୁ ଗୌରବେ ।

* * *

Digitized by srujanika@gmail.com

ଦେଶର ମଙ୍ଗଳ ଯାହାର ଚିନ୍ତା
ତାହା ବିନା ତା'ଙ୍କୁ ସକଳ ଚିତା,
ଅସ୍ୱୀକାର ଏହା କରିବ କିଏ—
ନିଜେ ଜଳି ଦୀପ ଆଲୋକ ଦିଏ ।

*   *   *

ଅନ୍ତରର ପୂର୍ଣ୍ଣ କରମ ଯେତେ
ସମ ଦିଶେ କର୍ତ୍ତା ହୃଦୟଗତେ;
ଆଲୋକ ବହ୍ନିନ ଅନ୍ଧାର ସ୍ଥାନ
ଖାଲ ଢିପ ଯଥା ସବୁ ସମାନ ।

*   *   *

ବଡ଼ ଲୋକଙ୍କର ନୋହିବ ଜ୍ଵାଇଁ,
ଦାଘର ପଛକେ ହୋଇବ ଭାଇ;
କଳା, ଧଳା ଘୋଡ଼ ବଡ଼ଙ୍କ କଥା,
ଦାଘର ନିରତ ମୁକୁଳ ମଥା ।

*   *   *

ନ ଅରଜୁ ପଛେ କାଣି କଉଡ଼ି,
ଥିଲ ଧନ ଯିଏ ଗାଟେ ସମ୍ପଦ,
ତାହାରେ କହନ୍ତି ଚତୁର ବୋଲି—
ଏକଥା କେବେହେଁ ନଯାଅ ଭୁଲି ।

*   *   *

Digitized by srujanika@gmail.com

ସଜନାଙ୍କୁ କେବେଁ ଯାହାର ଧନ,
ହଜ ପୁଣି ହୁଏ ହତ ଚେତନ,
ପ୍ରକୃତ ଅବୋଧ ସେଇଟି ଭାଇ,
ଏଥିରେ ସନ୍ଦେହ ତିଳେହେଁ ନାହିଁ ।

* * *

ବୋଲ କେବେ ତହୁଁ ପାଇବ ମାପ
ଅପର ହାତେ ଯେ କରଏ ପାପ ?
ସମ୍ଭବାସମ୍ଭବ ତାହାଠି ନାହିଁ;
ସବୁ ପାରେ ସିଏ ବେଳକୁ ଚାହିଁ ।

* * *

ପେଟ ପୂର ଦେବ ନିରନ୍ନେ ଅନ୍ନ,
ସହାୟହୀନଙ୍କୁ ସାହାଯ୍ୟ ଦାନ,
ଆରତର ଡାକ ଶୁଣିବ ଠିକେ
ନପାର ପଛକେ ଈଶ୍ୱର ଟିକେ ।

* * *

ପରପାଇଁ ଯଦି ପାରିବ କାନ୍ଦ
ଧନ୍ୟ ହେବ ତୁମ ଚରଣେ ବନ୍ଦ ;
ଛୁଟିବ ସକଳ ଅଜ୍ଞାନ ଭୟ,
ଜଗତ ହୋଇବ ଆନନ୍ଦମୟ ।

* * *

Digitized by srujanika@gmail.com

କେହି ଯଦି କରେ ତୁମ ପ୍ରଶଂସା
ଦୂରେ ରହ ତା'ର କର ଅନସା
ନିନ୍ଦା ଅପମାନେ ଜୀବନ ଗଢ଼,
ଯେତେ ପୋଡ଼ ସୁନା ଉଜ୍ଜ୍ୱଳ ଗାତ ।

* * *

ହସ ହଏ ଯା'ର ଅଧରେ ଦେଖା,
କୁଟୀଳ-ଆଲେଖ୍ୟ ଅନ୍ତରେ ଲେଖା,
ହଅନା ତା' ସଙ୍ଗେ ହୃଦୟ ଘାତ,
ହଳାହଳ ମଣ ତାହାର ସାଥୀ ।

* * *

ଗୀତ ଗାଇବାକୁ ନକର ଭୟ
ଗୀତ କରେ ପ୍ରାଣ ଅମୃତମୟ,
ଉସାରଣ କେଉଁ ଅଜ୍ଞାତ ସୁଏ
ପ୍ରୀତି ପୁଲକରେ ପରାଣ ଧୁଏ ।

* * *

ପର ଧନେ ଯା'ର ଜନମେ ଲୋଭ,
ନିଜ ଦୀନତାରେ ବଢ଼ଇ କ୍ଷୋଭ;
ଆଗେ କର, ପଛେ କରେ ଶୋଚନା,
ସେମାନଙ୍କୁ ସାଧୁ ସମାଜ ମନା ।

* * *

Digitized by srujanika@gmail.com

ଘରେ ନାହିଁ ଯା'ର ସୁଣ୍ଡାରେ ଲୁଣ,
ଖାଇବାକୁ ଗୁହେଁ ସତର ଭୁଣ;
ଥାଇ ସିଏ ପୁଣି ନ କରେ ବ୍ୟୟ,
ତାହାଙ୍କଠି ଜନ୍ତୁ ଆଖ୍ୟା ସଧେୟ ।

*　　　*　　　*

ଧନ, ଯଉବନ ମନୁଷ୍ୟେ ଯଥା,
ସମସ୍ତ'ସେପରି କହଇ କଥା;
ତନହେଁ ଯେଉଁଠି ଏକାଠି ରୁଣ୍ଡ
ଘଟାନ୍ତ ନରେତ ପ୍ରଳୟ କାଣ୍ଡ ।

*　　　*　　　*

ମନାନ୍ତର ବୋଲି ଯାହାରେ କହ,
ମତାନ୍ତର ତା'ର ପିତା କ ନୁହ ?
ଏକଥା ନିଶ୍ଚିତ ମନରେ ରଖ;
ଅଟକ୍ଲଣ ପୂରିବ ଭ୍ରମର ଲକ୍ଷ୍ୟ ।

*　　　*　　　*

ନଜକୁ କେବେହେଁ ନମଣ ସାନ,
ନଜ ଯୋଗୁଁ ଏହି ଖିଳ ଭୁବନ ।
ବଟାଳ-ବାରିଧି ବନ୍ଦ୍ ସମଷ୍ଟି
ଧୂଳିକଣା ଯୋଗେ ଅନନ୍ତ ସୃଷ୍ଟି ।

*　　　*　　　*

Digitized by srujanika@gmail.com

ସବୁଠି ଗୃହେଁ ସେ ସ୍ଥାପିବ କୀର୍ତ୍ତି,
ଯେଉଁ ଲୋକଙ୍କର ବାଦୁଡ଼ ମାତ୍ର,
ଯେତେ ସେ କାର୍ତ୍ତିକ ପଢୁନା ପାଠ
ଅପର ଗୋଡରେ ଗୁଲଲ ବାଠ ।

* * *

ନିମିଷକେ ଭଲ କରଇ ସାଧୁ,
ଅସାଧୁର ମନ-ଭିତର ମାଦୁ;
କୋଟି ଜନମର ଅନ୍ଧାର ଘରେ
ନିମିଷେ ପ୍ରଦୀପ ଆଲୋକ ଭରେ ।

* * *

କେତେ ଯତ୍ନ କରେ ତୁମ ଅନଷ୍ଟ
ପାଅ ତୁମେ ସଦା ତାହାର ଇଷ୍ଟ ।
କେତେ ଯତ୍ନ ଦଏ ତୁମକୁ ମାରି
ମାଡ଼ ଥାନ ତା'ର ଦଅ ସାଉଁଳି ।

* * *

କହନାହିଁ କଥା କେବେହେଁ ପଦେ
ଯେଉଁଥିରେ ପର ପ୍ରାଣକୁ ବାଧେ;
ଗଢିବାରେ ଦିନା କୃତ୍ତିକୁ ଅଛି
ଭାଙ୍ଗିଲେ ଜଗତ କରିବ ଛି ଛି ।

* * *

Digitized by srujanika@gmail.com

ତୁମ ବନ୍ଦନ ଯେ ବନ୍ଧନ ମଣେ
ଗନ୍ଧ ଚନ୍ଦନ ଯେ ଗୋ'ମୟ ଗଣେ,
ମୃଦୁ-ମଧୁ-ଭାଷା ଅନ୍ତର ହାଣେ,
ଦୂରରୁ ପ୍ରଣତ ତାହା ଚରଣେ ।

* * *

ତୁମକୁ ଯା'ଭଲ ଆନକୁ ସଲ,
ଏ କଥାରେ କେବେଁ ନାହିଁ'ଟି ଭୁଲ;
ତୁମକୁ ଯାହା କି ସୁନ୍ଦର ଦିଶେ
ଅସୁନ୍ଦର ବୋଲି ଆନ ଯେ ହସେ ।

* * *

ବନ୍ଧୁତା କରିବା ସକଳ ଠାଇଁ-
ଠିକ୍ କେହି କହି ପାରିବେ ନାହିଁ;
ସାଗରୁ ପାଇଲେ ଶଙ୍କର 'ଗର'
ଲକ୍ଷ୍ମୀ ଲଭିଥିଲେ ଚକରଧର ।

* * *

ନିଜପାଇଁ ନୁହେ ତୁମର ସୃଷ୍ଟି,
ବିଶ୍ୱପ୍ରତି ଟିକେ ପକାଅ ଦୃଷ୍ଟି;
ସ୍ୱାର୍ଥ ମଧ୍ୟେ କଲେ ବିଶ୍ୱର ଚିନ୍ତା
ଲୋଡ଼ାନାହିଁ ପୂଜା ପଠନ ଗୀତା ।

* * *

Digitized by srujanika@gmail.com

ଜଗତ କର୍ମର ଖେଳ କୁଟୀର,
ଅବସର ପାଇଁ ନଥାଏ ବେଳ;
ଆଳସ୍ୟେ ଯେ ନିତ କଟାଏ ଦିନ,
ଜୀବତେ ଥିଲେ ସେ ମୃତ ସମାନ ।

* * *

କର୍ତ୍ତବ୍ୟ ବୋଲି ହେ ! ଯାହାକୁ ବୁଝ
ମୁଷ୍ଟି ବନ୍ଧ ହୋଇ ତା' ସଙ୍ଗେ ଯୁଝ;
ଶେଷଫଳ ତା'ର ଦେଖିବା ଯାଏଁ
ଜଗତ ତୁମଠୁଁ ସେତିକ ଚାହେଁ ।

* * *

ଲକ୍ଷପତି ପୁଣି କହନ୍ତି ତା'କୁ,
ଲକ୍ଷହୀନ ଜନ-ଉପାର୍ଜିତକୁ,
କଷ୍ଟକୁ କୌଶଳେ ନଏ ଯେ ଟାଣି
ଶୁଖିଲା ମଧୁର ବଚନ ହାଣି ।

* * *

ହୋଇଲେ ମନୁଷ୍ୟ ଗରବ ଅନ୍ଧ
ଡେଇଁଲେ ପ୍ରତ୍ୟେକ ସୀମାର ବନ୍ଧ
ଭଲ ତାକୁ ସବୁ ଦିଶଇ ଭୁଲ,
କରେ କପା ସଙ୍ଗେ କର୍ପୂର ତୁଲ ।

* * *

Digitized by srujanika@gmail.com

ପର ଗୋଡରେ ଯେ ଚ଼ୁଲଇ ବାଟ,
ପର ଆଖରେ ଯେ ଦେଖଇ ନାଟ;
ପର ଗୌରବେ ଯେ ଗୌରବବାନ୍,
ତା'ଙ୍କୁ କରେ ବଶ୍ୱ ଅଯୋଗ୍ୟ ଦାନ ।

*　　*　　*

ଫୁଲ ଚନ୍ଦନେ ଯେ ପଥର ପୂଜେ,
ସ୍ୱପନ୍ନ ଦେଖିଲେ କସ୍ତୁନ ବୁଝେ,
ଜଗତେ ଦେଖାଇ ହରଙ୍କି ଡାକେ,
ବସନାଙ୍କି କେଉଁ ତାହାର ପାଖେ ।

*　　*　　*

ଜୁହାର ଯାହାକୁ ସକାଳୁ ଉଠି
ଗୁହାଘ କଲେ କ ଫଳ ସେଇଠି ?
ଆଶା ବପଘାତ ପାଇବ ଫଳ
ଅମାତ୍ତର ଯେଣୁ କୋଠ ଭଣ୍ଡାର ।

*　　*　　*

ବସ୍ତୁରପନ୍ତ ଯେ ଲୋକେ ବୋଲଏ
ବକାର ପୃଷ୍ଠେ ସେ ତଥାପି ପାଏ
ପୁରସ୍କାର ନତ; ବଜାରଙ୍କାନେ
ତିରସ୍କାର ଦେବା ପାଇଁ ଭୁବନେ ।

*　　*　　*

Digitized by srujanika@gmail.com

ମିଠାର ପ୍ରଶଂସା କରିବା ଆଗେ,
ବୃନ୍ତ ଅଛି କ କାରଣ ସବୁଗେ;
ଖଣ୍ଟା ବୋଲି ଯା'ରେ ଭାବୁଛ ଊଣା
ତୁମ ମନେ ନ ରହିବ ସେ ଘୃଣା ।

*    *    *

ଦୁଃଖେ ଯେ କଷ୍ଟର ଜୀବନ କାଳ
ସୁଖ-ସୌଧ ତୋଳି ଅଛି ତୁମର,
ତା'କୁ ଭୁଲି ଯଦ ପାଇବ ସୁଖ
ଜଗତ ତୁମକୁ କହିବ ମୂର୍ଖ ।

*    *    *

ଜୀବନେ ଯଦ୍ୟପି ବାସନା କର
ଜଗତରେ ଜଣେ ହେବାକୁ ବଡ଼,
ସମସ୍ତଙ୍କ ତଳେ ଖୋଜ ଆସନ
ଘନ-ଝନା ଶାସ୍ତ୍ରୀ ଗୃହକ ସମ ।

*    *    *

କର୍ତ୍ତବ୍ୟ ପାଶରେ କେ ନୁହେ ବଡ଼,
କର୍ତ୍ତବ୍ୟର ସର୍ବେ କଣା ଗୃହକର;
ଅବହେଳା ଯିଏ ତାହାଠି କରେ,
ଅମନୁଷ୍ୟ ତା'କୁ କହିଲେ ଚଳେ ।

*    *    *

Digitized by srujanika@gmail.com

ଆଗେ ଘଟେ ଯା'ର ଦୁଇଟି କଥା,
ସତ୍ୟ ଛଳେ କହି ବୁଲଇ ମିଥ୍ୟା,
ସମସ୍ତଙ୍କ ପାଶେ ଭଲେଇ ହୁଏ,
ପୁରୁଣା କପଟି ଜାଣିବ ସିଏ ।

*　　　　*　　　　*

କୁସଂସ୍କାର ସ୍ତୂପେ ଆସନ ପାତି
ସଂସାର ପାଇଁ ଯେ ଢେରନ୍ତି ସ୍ଥିତି,
କ କହିବା ତା'କୁ ଉଚତ ଭାଇ !
ଚଷାବ କବ ତ ବୁଝିଲ ନାହିଁ ।

*　　　　*　　　　*

ସୀମା ମଧ୍ୟେ ରହ ଅସୀମେ ରୁହିଁ
ଅସୀମକୁ ନଷ୍ଟ ଲଭିବ ଭାଇ !
ଅନ୍ଧାରେ ଜଗିଲେ ସ୍ଥିର ମାନସେ
ଭଜନ୍ତି ତପନ ତରୁଣ ବେଶେ ।

*　　　　*　　　　*

ଅନ୍ଧାରେ ଯେ ଯେତେ କରଇ ଘୃଣା,
ଆଲୋକ ତାହାଠି ସେତିକ ଊଣା;
ଅନ୍ଧକାର ବନା ଆଲୋକ ମୂଲ
ବାଛବା ଜଗତେ ନିହାତି ଭୁଲ ।

*　　　　*　　　　*

Digitized by srujanika@gmail.com

ସତ୍ୟର କୃପାଣ ଅଛୁ ଯା' କରେ
ଜହ୍ନାରନ୍ତ ଶତ୍ରୁ ତା'ର ପଦ୍ମରେ;
ଗୃହେ ଯେତେବେଳେ ବଇଠି ଜଳେ
ଅନ୍ଧାର ଲୁଚଇ ଚରଣ ତଳେ ।

*   *   *

ଅନନ୍ତ ଜୀବନ ଲୋଡ଼ ହେ ଯଦି,
କର୍ମ ମଧ୍ୟେ ଗଢ ନିଜ ସମାଧି,
ଭ୍ରମେ ପଡ଼ ଆନେ ଖୋଜିଲେ କାହିଁ
ଜୀବନାନ୍ତେ ମଧ୍ୟ ମିଳଇ ନାହିଁ ।

*   *   *

ସତ୍ୟ ସୁଖ ଯଦି ପରାଣେ ଲୋଡ଼
ଦୁଃଖ ନର୍ଯାତନେ ପରାଣ ପୋଡ଼,
ଦୁର୍ଦ୍ଦିନ-ସାଗର ଅପର ପାରେ,
ଅମୃତ ଆନନ୍ଦ ମୁକ୍ତେ ବହରେ ।

*   *   *

ଆପଣେ ସଜାଏ ନିଜକୁ ମୁନି
ଜାଣି ନ ଜାଣିଲା ସମାନ ଭୁନି,
ଶତ ପ୍ରଶ୍ନେ, ପଦେ ଉତ୍ତର ଦିଏ
ଅନ୍ତର ତା' କେବେଁ କମ୍ପିଳ ନୁହେ ।

*   *   *

Digitized by srujanika@gmail.com

ନିଜର ବଡ଼ିମା ବଖାଣେ ସ୍ୱଏଁ,
ଉପରେ ପଡ଼ି ସେ ପ୍ରଶଂସା ଗାଏ,
ପଛରେ ନିଅଇ ସହସ୍ର ଗାଳି,
ଅଳପକରେ ସେ ଲଗାନ୍ତ କାଳି ।

*　　　*　　　*

ସମାଲୋଚକ ତା' ନିଜର ଦୋଷ—
ଆଗେ ଥୋଇ କେବେଁ ନ ଲଭେ ତୋଷ,
ପଶୁଠାରୁ ଆମେ ହେଲେହେଁ ଘୃଣ୍ୟ
ଭାବୁ ଆମଠାରୁ ପଶୁ ନ୍ୟୂନ ।

*　　　*　　　*

ପଶୁ କରେ ନିତ ବିଶ୍ୱର ହିତ,
ଆମେ ଠିକ୍ କରୁ ତା' ବିପରୀତ;
ଖାଇ କୁଣ୍ଡା ନଡ଼ା ଦିଏ ସେ କ୍ଷୀର,
କ୍ଷୀର ଖାଇ ଦେଉ ତା' ଗଳେ କ୍ଷୁର ।

*　　　*　　　*

ପଶୁ ପାଇଲେ ହେଁ ଅସହ୍ୟ ବ୍ୟଥା,
କହେ ନାହିଁ ପଦେ ଫିଟାଇ କଥା;
ତଥାପି ହିତ ସେ କରଇ ଆମ
ଜିଇବା ପର୍ଯ୍ୟନ୍ତ ଶେଷ ବିଶ୍ରାମ ।

*　　　*　　　*

Digitized by srujanika@gmail.com

ପ୍ରତ-ଉପକାର ପଶୁ କ ବୁଝେଁ,
ଏକଥା କେଉଁଠି ବୁଝିଲା କଏ ?
ମାଛ ନ କଲେହେଁ କାହାର କ୍ଷତ
ବଧ ଦୃଷ୍ଟି ଢାଳେ ବଶ୍ୱ ତା' ପ୍ରତ ।

*           *           *

ପର ଦୁଃଖରେ ଯେ ଭଜଇ ମୂକ,
ପର ସୁଖ ଗଣେ ନଜର ସୁଖ;
ନଖିଳ ଆନନ୍ଦ ନରତ ଲୋଡ଼େ,
ଦେବତା ସେ' ବଶ୍ୱବାସୀ ମଧ୍ୟରେ ।

*           *           *

ବସି ନାହିଁ କାଟ ଦବସମାନ
ହସି କାଟିଦଅ ଏ ନଟବଦନ;
ଲାଞ୍ଛନା ପଛକେ ନରତ ବୁଦ୍ଧ,
ଶଶୀସମ ସୁଖ ଜଗତେ ଦଅ ।

*           *           *

ଉଠୁ ଉଠୁ ଯଦ ଚରଣ ଖସେ,
ମଥା ପୋତ ବସନାହିଁ ବରସେ;
ପୁଣି ଉଠିବାକୁ କର ଯତନ
ପୂର୍ଣ୍ଣ ହେବ ତବ ମନସକାମ ।

*           *           *

Digitized by srujanika@gmail.com

ପଙ୍କ ମଧ୍ୟେ ରତ୍ନ ପତନ କର
ଉଠ ପଙ୍କଜାତ କମଳ ସର,
ଜଳକୁ ପଡବ କାଳମା ଖସି
ଅମୃତ ଆନନ୍ଦେ ଉଠିବ ହସି ।

*　　*　　*

ଯାହାକୁ ଯେ କରେ ଯେତେ ଆଦର
ଦୂରେ ରତ୍ନ ମୂଲ୍ୟ ବଢ଼ାଏ ତା'ର;
ଶଶୀ କାନେ ବାଜେ କୁମୁଦ କଥା,
ଭାସ୍କର ବୁଝଇ ନଳିନୀ ବ୍ୟଥା ।

*　　*　　*

ନ ଦଶଇ କଷ୍ଟ ହୋଇଲେ ଅନ୍ଧ,
ଡେଇଁବେ ଯଦ୍ୟପି ଦୁଃଖର ବନ୍ଧ,
ଘନଭୂତ ହୁଏ ନୟନ ଧାର,
ପାଣି ଶୀତ ଯୋଗୁଁ ବରଫାକାର ।

*　　*　　*

ପାପୀ ଲୁହେ ସିଏ କରେ ଯେ ପାପ,
ଘୋଡାଇ ଗୋପନେ ରଖେ ଅମାପ,
ହତ୍ୟାକାରୀ ଠାରୁ ପ୍ରକୃତ ଦୋଷୀ
ଜୀବନ୍ତେ ଯେ ନିଏ ରକତ ଶୋଷି ।

*　　*　　*

Digitized by srujanika@gmail.com

ଦୁଃଖ ଦେଇ ଯିଏ ଅପର ପ୍ରାଣେ,
ନିଜକୁ ନିରତ ଗୌରବୀ ମଣେ,
ନ ବୁଝଇ ନେତ୍ର ଲୋତକ କଥା,
ମନୁଷ୍ୟ ତାହାକୁ କହିବା ବୃଥା ।

* * *

କରିବାକୁ ତୁମେ ଯାଅ ଯେ କାମେ,
ସଞ୍ଚ ସେଥିପାଇଁ ଧୈର୍ଯ୍ୟ ପ୍ରଥମେ;
ତୁମ ମନ କେହି ବୁଝିବେ ନାହିଁ,
ମିତ୍ର ହୋଇପାରେ ଶତ୍ରୁ ତା' ପାଇଁ ।

* * *

ଲାଗିଥିଲେ ପର ଗୋଡ଼େ କାଦୁଅ,
ଦୁଃଖିତ ହେବାର ଉଚିତ ନୁହ;
ନିଜ ଗୋଡ଼ ଆଗେ ନିର୍ମଳ ରଖି,
ଅଖିଳ ପାଦକୁ ପକାଅ, ଆଖି ।

* * *

'ମଦ' 'ଅଫିମ'ରେ ଯାଏ ନା 'ଜାତି',
ଘୋଟିଆସେ ଅମା ଶ୍ରାବଣ ରାତି,
ତେଣୁ ତା' ଅପର ନାମଟି ନିଶା,
ଯେ ଭୁଲେ, ହୁଅଇ ସେ ଲୋକହସା !!

* * *

Digitized by srujanika@gmail.com

ହଳ ବାନ୍ଧେ ଯବ ଘାକୁଆ ବୁଢା,
ବେଳ ଦେଖି ବଳେ ନବଏ ହୁଡା;
କ୍ଷେତ ମୂଳୁ ନାହିଁ କାଢ଼ଇ ଘାସ,
ବଅର୍ଥ ସେ ଚଷା କରିବା ବୃଷ ।

*　*　*

କୁଟୀଳ ମଧ୍ୟରେ ହୋଇବ ସଚ୍ଚା,
ପହିଲୁ ନଡର କ୍ଷତ ଓ ଝର୍ଚ୍ଚା,
ଲକ୍ଷ୍ୟରଖି ହୃଦେ ବାନ୍ଧିବ ବଳ
ବ୍ୟବସାୟୁ ତାକୁ ସାଜେ କେବଳ ।

*　*　*

ଅତ୍ୟେର ଯଦ୍ୟପି ଯାଏ ଗ୍ୟେବାଇ,
ଗ୍ୟେର ଦାଣ୍ଡେ ହାଟେ କରଇ ଟାହି;
ଆନ ଅବଗୁର ନୟନେ ହେର;
ଅନାବୃଷ୍ଟି କ୍ଷୋଭେ ଡାକଇ ହର ।

*　*　*

ପାପୀକୁ ନମଣ କେବେଁ ନୟୂନ,
ପାପକୁ ନରଡ ମଣିବ ଘୃଣ୍ୟ,
ଉପ୍ୟାବହ ଲୁହେ ଯୁଦ୍ଧେ 'ଫହାର୍',
'ସମର୍' ଶବଦ ଆଗେ ଫହାର ।

*　*　*

Digitized by srujanika@gmail.com

ତୁମେ ଯହିଁ ଲଭ ଆତ୍ମ ସନ୍ତୋଷ,
ନହାଇପାରେ ଆନ ପକ୍ଷେ ତା' ଶ୍ରେଷ୍ଠ;
ଚନ୍ଦ୍ରାକର ତୋଷେ ଦର୍ଶକ ମନ,
ସନ୍ତରଣକାରୀ ଶୋଷେ ଜୀବନ ।

*　　　*　　　*

ଅଳପ ଜାଣି ଯେ ବୋଲାଏ ଜ୍ଞାନୀ,
ସ୍ୱଳ୍ପ ବିତ୍ତେ ମଣେ ନିଜକୁ ଧନୀ,
ଜଗତେ ମଣଇ ନିଜକୁ ବଡ଼,
ସେମାନଙ୍କ ସୀମା କେବେଁ ନ ମାଡ଼ ।

*　　　*　　　*

ଖଳ ଦୁଃଖ ଦେଖି ଆନନ୍ଦେ ହସେ,
ଅପର ଦୁଃଖରେ ବିରସେ ବସେ,
ଗୁରୁ ଭୁଲ ଖୋଜେ ଗୌରବ ପୁଣି,
ମୂଢ଼ ସେ ନବୋଧ ଅଳଆ ମୁଣି ।

*　　　*　　　*

ଦମ୍ଭୋଳି ଆଘାତ ପାରିଲୁ ସହି,
ଚପଳା ତୋଷଇ ନିଖିଳ ମହି;
ଦୁଃଖ ଦୁର୍ବିପାକେ ମାନବ ମନ
ବିମଳ ଆନନ୍ଦେ କରେ ନର୍ତ୍ତନ ।

*　　　*　　　*

Digitized by srujanika@gmail.com

ଅଶ୍ରୁ କଣା ଦେଖି ତୁମର କେହି
ଆନନ୍ଦେ ନମିଷେ କାଳ କାଟଇ;
ଅଖଣ୍ଡ ଆନନ୍ଦ ପାଇଁ ତା ପ୍ରାଣେ,
ଜୀବନ ତୁମର ଲୋଡେ ଯେସନେ ।

* * *

ପର ହାତକୁ ଯେ ଥାଏ ଅନାଇ
ନରତ ନଜର ଉନ୍ନତି ପାଇଁ ;
ନରର୍ଥକୁ ହୁଏ ସକଳ ଆଶ,
ଗୋରୁ ଖାଏ ଛୁଇ ମୂଳର ଘାସ ?

* * *

ମନୁଷ୍ୟ ଭିତରେ ପ୍ରବେଶ କଲେ,
ଭଲ ମନ୍ଦ ଜଣା ପଡଇ ଭଲେ,
କୂଳେ ଉଭା ରହି ମାପିଲେ ସିନ୍ଧୁ,
ମାଣିବ କପାଳେ ମୂରୁଖ ବନ୍ଧୁ ?

* * *

ପ୍ରାତଃ ଉଠି ହେଲେ ଚିତା ପଇତା,
ଚୁଟିବନ୍ତ ହୋଇ ଗାଇଲେ ଗୀତା,
ସୃଷ୍ଟି ଟାକୁ ନଜ ସ୍ୱାର୍ଥ ସକାଶେ,
ଦୃଷ୍ଟି ଯେ ଢାଳନ୍ତି ମନୁଷ୍ୟ କି ସେ ?

* * *

Digitized by srujanika@gmail.com

ଦେଖିଲେ ଅପରେ ଦୂରରୁ ହସି,
ନିଜ ଲୋକ ପରି ପାଖରେ ବସି,
ଶେଷରେ ଲଗାନ୍ତି ଗଳାରେ ଛୁରୀ,
ମନୁଷ୍ୟ ତାହାଙ୍କୁ କହ କପରି ?

*　　　*　　　*

‘ସନ୍ଥ’ ବୋଲି ବିଶ୍ୱ ଯାହାକୁ କହେ,
ଅସନ୍ଥ ଲକ୍ଷଣ ତାହାଠି ପାଏ,
କିଏ ଅବା ମଧୁ, କିଏ ସେ ବିଷ,
ଅସନ୍ଥ ସନ୍ଥରେ ପ୍ରଭେଦ କିସ ?

*　　　*　　　*

ମୂର୍ଖ ମନେ ଯାହା କରେ ପସନ୍ଦ,
ଜ୍ଞାନୀ ତାହା ଭାବେ ନିହାତି ମନ୍ଦ;
ଆଣ୍ଠୁଏ ଜଳରେ ଡିଏଁ ସଫରୀ,
ତିମିକୁ ଦେଖିଚ କିଏ କପରି ?

*　　　*　　　*

ବାମନ କି କେବେ ପାଇବ ଚନ୍ଦ,
କପାଁ ଏ ପ୍ରୟାସ ପୀରତି ଫାନ୍ଦ,
ସିନ୍ଧୁ ସନ୍ତରିବା ଆଶାକୁ ଛାଡ,
ସ୍ରୋତ ମୁଖେ କପାଁ ବାଲିର ବାଡ ?

*　　　*　　　*

Digitized by srujanika@gmail.com

ମୂଳ ବୋଲି ଯା'ର କିଛିହିଁ ନାହିଁ,
ଗୌରବ କୂଳ କଥା କିପାଇଁ ?
ବୃକ୍ଷ ନାହିଁ ଯିଏ ଅଙ୍କୁର ଫଳ
କେଉଁ ସଙ୍ଗେ ଯିବା ବାନ୍ଧିବ ମୂଳ ।

*　　　*　　　*

ବ୍ୟଥା ଯା'ର ପ୍ରାଣେ କହେ ନା କଥା,
ଅନୁଭବେ ନାହିଁ ଇଙ୍ଗିତେ ସତ୍ତା;
ସୃଷ୍ଟିର ଗତିକୁ ନପାରେ ଧରି,
ମନୁଷ୍ୟ ତାହାକୁ କହ କିପରି ?

*　　　*　　　*

ଜନ୍ମରୁ ମନୁଷ୍ୟ ନୁହଇ ବଡ଼,
କର୍ମ କରେ ତା'କୁ ମହତତର;
ନଇଲ୍, ଜନନୀ ଧାପରେ ଭେଦ,
ପାରିବ କି କରି କେହି ସ୍ୱା' ଛେଦ ?

*　　　*　　　*

'ହରି' 'ହରି' କହି ଗଡ଼ାଏ ମାଳ,
ଦୁଃଖ କା'ର ଶୁଣି ଲୋତକ ତାଳ,
ଦେଲାବେଳେ ମୁଠେ ଲୁଚନ୍ତ ଘରେ,
କି ଆପତ୍ତି ତା'ଙ୍କ 'ପଶୁ' ଆଖ୍ୟାରେ ?

*　　　*　　　*

Digitized by srujanika@gmail.com

ବିସ୍ତ କୁକୁରେ ଦେଇ ଆସନ,
ମନୁଷ୍ୟଙ୍କୁ ଭାବୁ ତାହାଠୁ ହୀନ,
ଚହ୍ନିଁ ଲଭୁଁ ପୁଣି ଆତ୍ମ ପ୍ରସାଦ;
ଏହାଠାରୁ ଅଛି କି ଅବସାଦ !

* * *

ଦୁଃଖରେ ଯେ ନାହିଁ ହୁଏ କାତର,
ବିପଦେ ଅଟଳ ସମାନ ସ୍ଥିର,
ଭୂତିବନ୍ତ ହୋଇ ନହୁଏ ଠେକ,
ସେହି ସିନା ପ୍ରକୃତରେ ବିବେକୀ ?

* * *

ମିଠା କେବେଁ କରିନାହିଁ ଭକ୍ଷଣ,
ନିମ୍ବର ପିତା ନ ଜାଣି ଯେ’ ଜନ,
ଲୋକ ମୁଖୁଁ ଶୁଣି ମିଠାକୁ ସ୍ତୁତେଁ,
ତାହାଠାରୁ ବଳି ନିର୍ବୋଧ କିଏ ?

* * *

ସାକାରୋପାସନା କରି ନିରତ,
ନିରାକାର ପାଇଁ ଲଗାଅ ଚିତ୍ତ,
କହିବାକୁ କହେ ନଲାଗେ ବ୍ରୀଡ଼ା
ମୁଣ୍ଡ ନାହିଁ ପୁଣି ମୁଣ୍ଡର ପୀଡ଼ା ।

* * *

Digitized by srujanika@gmail.com

ଫୁଟିଲ୍ କୁସୁମ ଯେ' ଜନ ମୋଡ଼,
ନିମିଷକ ପରେ ଦିଏ ଫୋପାଡ଼,
ବନ୍ଧୁ ଯଦି ତା'କୁ ରସିକ କହେ,
ଅରସିକ ତେବେ କେଉଁ ଲୋକ ହେ !

*  *  *

ସତ୍ୟ ମୁଖେ ଦେଖା ନଦିଏ ଭସ୍ମ,
ମିଥ୍ୟାରେ ନିରତ କରେ ଅଥସ୍ମ,
ରବି ସହଚର ଅନ୍ଧାର ସିନା,
ଦିବସ ଆଲୋକେ ପଡ଼େ କି ଚିହ୍ନା ?

*  *  *

ତୁମେ ଯଦି କହ ଅପରେ ଦୋଷୀ,
ନ ଆସିବ ସିଏ ତୁମକୁ ତୋର୍ଷୀ,
ମରିଚେ ଖୋଜିଲେ କର୍ପୂର ଗନ୍ଧ,
ଜଗତ କି ନାହିଁ କହିବ ଅନ୍ଧ ?

*  *  *

ନିମ୍ବ ଚନ୍ଦନେ ଯେ ସମାନ କରେ,
ଘିଅ, ତେଲ ଖୋଜେ ଏକଇ ଦରେ,
ଗୁଡ଼, ଶାଗ ମାତ୍ର ପୋଷର କାକ,
ଅଛି କି ତାହାର ଛଳେ ବିବେକ ?

*  *  *

Digitized by srujanika@gmail.com

ଗଛଦାଣି ଛାଠୁରିଆ ଯେ କାଲେ
ବିଶ୍ରାମ ନେଉଥିଲେ ତାହାର ତଳେ,
ତରୁ ନାଇଁ ବୋଲି ହୋଇଲ ଘୃଷ୍ଟା,
କେ ସାଧୁ, ଅସାଧୁ ବୁଝରେ ବାପୁ !

*        *        *




ପ୍ରକାଶକ:—ବାଣୀ ନିକେତନ,
ପଲସରା, (ଗଞ୍ଜାମ)

ମୁଦ୍ରାକର:—ଶ୍ରୀ ସାଧୁଚରଣ ଦାସ,
କିଶୋର ପ୍ରେସ, ବ୍ରହ୍ମପୁର,
୧୯୬୫ (୧୦୦୦)

Digitized by srujanika@gmail.com

# ଲେଖକଙ୍କ
# ପ୍ରକାଶିତ ଓ ଅପ୍ରକାଶିତ ବହି

ପ୍ରକାଶିତ :—

## କବିତା

କର୍ମଢ଼ଙ୍ଗା

ବିଧବାର ଗୁହାରି

ବିଦାସ୍ତେ

ରହ୍ନସିକା

ପ୍ରକାଶ ଅପେକ୍ଷାରେ :—

ସାଧନା (ଭକ୍ତିମୂଳକ କବିତା ଗୁଚ୍ଛ)

ପୂଜାଫୁଲ „

ଭଣିକା „

ନିର୍ମାଲ୍ୟ „

ହୃଷାସ୍ପୃହା (ପ୍ରେମମୂଳକ କବିତା ଗୁଚ୍ଛ)

ହୃଷାଲେକ

ହୃଷାଚତ୍ର

ଛଣିକା

ଟୃହ୍ଲିକ, ଇତ୍ୟାଦି ।

## ଉପନ୍ୟାସ

ଦୁଷ୍ଟେ ସମାଧି

ଅ.ପ୍ର ବାସନା

ଅରୁଣୀ

Digitized by srujanika@gmail.com

